

ମୂଲ୍ୟ: ଟ 5.50

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ






# ମିଥା ଓ ତାର ଯାଦୁ ଯୋତା

ବି.ଜି. ଗୁଜ୍ଜରପ୍ପା



1990 (ଶକାବ୍ଦ 1912)

ମୂଲ୍ୟ : ଟ 5.50
Mitha and her Magic Shoes (*Oriya*)

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ଏ-5, ଗ୍ରୀନ୍ ପାର୍କ, ନୂଆ ଦିଲ୍ଲୀ-110016
କର୍ତ୍ତୃକ ପ୍ରକାଶିତ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ନେହେରୁ ବାଳ ପୁସ୍ତକାଳୟ

# ମିଥା ଓ ତାର ଯାଦୁ ଯୋତା

ବି.ଜି. ଗୁଜ୍ଜରପ୍ପା

ଅନୁବାଦ
ବାଳକୃଷ୍ଣ ପଣ୍ଡା

ମିଥା ସବୁବେଳେ ଭାବେ, ''ମୁଁ କିପରି ଟିକିଏ ଆକାଶରେ ଉଡ଼ି ବୁଲନ୍ତି ।'' ଦିନେ ସେ ଚାଟଶାଳୀରୁ ପାଠପଢ଼ା ସାରି ଘରକୁ ଫେରୁଥିଲା ।

ବାଟରେ ଦେଖିଲା ଦୁଇଟି ଯୋତା ପଡ଼ିଛି । ସେହି ଯୋତାଗୁଡ଼ିକର ଡେ଼ଣା ବି ଥିଲା ।

ମିଥା ଦୁଇଟି ଯୋତା ପିନ୍ଧିଲା ।

ଯୋତା ପିନ୍ଧିବା ସାଙ୍ଗେ ସାଙ୍ଗେ ସେ ପକ୍ଷୀଙ୍କ ପରି ଉଡ଼ିବାରେ ଲାଗିଲା ।

ସେ ଥକିଗଲା ପର୍ଯ୍ୟନ୍ତ ଉଡ଼ିଲା ।

ଘରକୁ ଫେରି ବାପା ଓ ମାଆ'ଙ୍କୁ ସେହି ଯାଦୁ ଯୋତାଗୁଡ଼ିକ ବିଷୟରେ କହିଲା ।

ତା' ପରଦିନ ସକାଳେ ସେ ଚାଟଶାଳୀ ଯିବା ଲାଗି ବାହାରିଲା ।

ତା'ର ସାଙ୍ଗସାଥିମାନେ ତା'କୁ ଉଡ଼ିବା ଦେଖି ଅବାକ୍ ହୋଇଗଲେ ।



କିନ୍ତୁ, ତା'ର ଶିକ୍ଷକ ସେହି ଯୋତାଗୁଡ଼ିକ ଦେଖି ଖୁସି ନ ଥିଲେ।

ସେହି ଦିନ ଠାରୁ ମିଥାର ସାଙ୍ଗସାଥି ତାହା ଦେଖି ସହି ପାରିଲେ ନାହିଁ। ତା' ସହିତ କଥା କହିବା ବି ବନ୍ଦ କରିଦେଲେ ।

ସେମାନଙ୍କୁ ଖୁସି କରାଇବା ଲାଗି ମିଥା ତା'ର ଯୋତା ପିନ୍ଧିବା ପାଇଁ ଦେଲା । ଭାବିଲା ବୋଧହୁଏ ସେମାନେ ତା' ପରି ମଧ୍ୟ ଖୁସିରେ ଉଡ଼ିବେ ।



କିନ୍ତୁ, ତା'ର ସାଙ୍ଗସାଥିମାନେ ସେହି ଦୁଇଟି ଯୋତା ପିନ୍ଧିବା ଲାଗି ନିଜ ନିଜ ଭିତରେ ଝଗଡ଼ା କଲେ ।

ଟଣା ଟଣି କରିବା ଫଳରେ ଯୋତା ଦୁଇଟି ଛୋଟ ଛୋଟ ଖଣ୍ଡ ହୋଇଗଲା ।

ମିଥା ତାହା ଦେଖି କାନ୍ଦିବାରେ ଲାଗିଲା । ତା'ର ସାଥିମାନେ ତାକୁ ନ କାନ୍ଦିବା ଲାଗି ବୁଝାଇଲେ ।

ସେହି ସାମାନ୍ୟ ଯୋତା ଦୁଇଟି ଲାଗି ମିଥା ତା'ର ଅନେକ ସାଥିଙ୍କୁ ହରାଇଲା । ଯୋତାଗୁଡ଼ିକ ପୂରାପୂରି ନଷ୍ଟ ହୋଇଯାଇଥିଲା । ଯୋତା ଆଉ ନାହିଁ । ଏବେ ମିଥା ଭାରି ଖୁସି ।



Printed at Nu Tech Photolithographers Delhi-110095